# ଶୈବ୍ୟାରାଣୀ ଶୋକ

ଓ

## ପଦ୍ମାବତୀ ଶୋକ



ପ୍ରକାଶକ—ବାଣୀ ଭଣ୍ଡାର
ନୂତନ ବସଷ୍ଟାଣ୍ଡ, ବ୍ରହ୍ମପୁର (ଗଞ୍ଜାମ)

ମୂଲ୍ୟ—ଟ ୨-୫୦

# ଶୈବ୍ୟାରାଣୀ ଶୋକ

( କଳାକଳେବର ବୃତ୍ତେ )

ଶୁଣ ମୋର ଗଳାମାଳରେ ମୋର ଦୁଃଖୀ ସନ୍ତାନ ।
ଗତ ରାତ୍ରେ ସ୍ୱପ୍ନ ଦେଖିଲି ତୋତେ ଦଂଶିଲା କାଳୀ ।
ନଯିବୁ ମୋ ଜୀବ ଜୀବନ ବନେ କୁସୁମ ତୋଳି ।
ଯେବେ ଯିବୁ ଧନ ବନକୁ ତୋତେ ଦଂଶିବ କାଳୀ ॥
ଦୁଃସ୍ୱପ୍ନ ଦେଖିଣ ବାଟରେ ଖିନ୍ନ ହୁଅଇ ମନ ।
ଅଜ ଫୁଲ ତୋଳି ନ ଯିବୁ ମୋହର ଜୀବ ଜୀବନ ।
ଶୁଣ ଗୋ ଜନନୀ ମୋହର ମୁଁ କହିବା ବଚନ
ସ୍ୱପ୍ନ କଥା ମିଥ୍ୟା ହୁଅଇ ଏହା ମନେ ତୁ ଘେନ ।
ଯେବେ ନ ଯିବି ମୁଁ ବନକୁ ମାତା କୁସୁମ ତୋଳି ।
ଫୁଲ ନ ଆଣିଲେ ବିପ୍ରେ ଗୋ ବହୁ ଦେବେଟି ଗାଳି ।
ଏପରି ମାତାଙ୍କୁ ପ୍ରବୋଧି ପୁତ୍ର ବିଦାୟ ନେଲା ।
ବିଶ୍ୱାମିତ୍ର ଉପବନରେ ସେ କୁସୁମ ତୋଳିଲା ।
ନାନା ଫୁଲମାନ ତୋଳିଣ ଭରିଲା ସୁଙ୍ଗୁଡ଼ାରେ ।
ହସ୍ତ ନ ପାଇବା ଡାଳକୁ ଭାଙ୍ଗିଲା ଆଙ୍କୁଡ଼ାରେ ।
ଫୁଲ ଡାଳେ ରହିଥିଲା ଯେ ସେ ମହାକାଳୀ ସର୍ପ
ରୋହିତକୁ ପ୍ରାଣେ ଦଂଶିଲା ବହି ମନରେ କୋପ ।
ପ୍ରାଣ ହରାଇଣ ରୋହିତ ଧରଣୀରେ ପଡ଼ିଲା ।
ପ୍ରହରୁ ଯାଇଣ କୁମର ଆସି ବେଳ ବୁଡ଼ିଲା ।
ବିପ୍ରେ ଯେ ପୁଚ୍ଛନ୍ତି ଶୈବ୍ୟାକୁ ପୁତ୍ର କେଣେ ରହିଲା ।
ଦେବାର୍ଚ୍ଚନ କାର୍ଯ୍ୟ କିପରି ଆଜ ହୋଇବ ଭଲ ।
ଏ ପର୍ଯ୍ୟନ୍ତ ଫୁଲ ଘେନିଣ ନ ଫେରିଲା କୁମର ।
କାହା ସଙ୍ଗେ ଆଜ ରହିଲା ଖେଳି ବନ ଭିତର ।
କିମ୍ପା ନ ଫେରିଲା କୁମର ଆହେ ଦ୍ୱିଜ କୁମର ।

ଦେଖ ମୁଁ ଆସିବ ଏ କ୍ଷତି ମୋତେ ବଦାସ୍ତୁ କର ।
ଏମନ୍ତ ପ୍ରବୋଧି ବିପ୍ରଙ୍କୁ ଶୈବ୍ୟା ବନକୁ ଗଲେ
ବୃକ୍ଷଆଡ଼େ ବୁଲି ଖୋଜନ୍ତେ ରୋହିତକୁ ଦେଖିଲେ ।
ବୃକ୍ଷର ମୂଳରେ ଏକାକୀ ପଡ଼ିଅଛି ନନ୍ଦନ ।
ମୁଖରୁ ଗରଳ ବହୁଛି ପିଣ୍ଡେ ନାହିଁ ପବନ ।
ହା ପୁତ୍ର ହା ପୁତ୍ର କହିଣ କାନ୍ଦି ପିଟିଲେ ମଥା ।
ଆହାରେ ଦଇବ କମ୍ପାଇ ଦେଲୁ ଦାରୁଣ ଶଳ୍ୟା ।
କୋଳରେ ପୁତ୍ରକୁ ଘେନିଣ କଲେ ଅତି ରୋଦନ ।
ମୋତେ ଛାଡ଼ି କାହିଁ ରହିଲୁ ଆରେ ଦୁଃଖୀ ଜୀବନ ।
ଆସିବା ସମୟେ ବାପରେ ମନା କଲି ମୁଁ କେତେ ।
ମୋ କଥା ନ ମାନି ଧନରେ କମ୍ପା ଅଇଲୁ ଏଥେ ।
ମାଆ ବୋଲି କଏ ଡାକିବ କଏ କରିବ ଗୋଳ ।
ଦେବ ଚିନ୍ତା ପାଇଁ ଧନରେ କେଉଁ ଆଣିବ ଫୁଲ ।
ଶୟନ ସ୍ୱପନ ଦେଖିଲେ ଉଠୁଥାଉ କୁମର ।
ମାଆ ବୋଲି ଡାକ କୋଳରେ ଲୁଚୁଥାଉ ମୋହର ।
ଏକାକୀ ଅଛ ଏ ବନରେ ଶୋଇଛୁରେ ସଙ୍ଗାତ ।
ମାଆ ବୋଲି ଡାକ ଢେ ଆଉ ଡାକ କରିବ ଅନ୍ତ ।
ରାଜ୍ୟ ଧନ ପତି ହରାଇ କଲି ଗଳାରେ ମାଳା ।
ଗଲା କାହିଁ ଝୁଲି ଗଳରେ ମୋର ଦୁଃଖ ପାଶୋରା ।
କାହିଁ ଗଲ ହରିଶ୍ଚନ୍ଦ୍ର ହେ ଅଯୋଧ୍ୟାର ରାଜନ ।
ତୁମର ପୁତ୍ରର ମରଣ ଦେଖ ମୋ ପ୍ରାଣଧନ ।
ହୃଦୟ ଫାଟୁଛି ମୋହର ଯାଉ ନାହିଁ ଏ ପ୍ରାଣ ।
ଧିକ ଧିକ ଆରେ ଦଇବ ତୁହି ଏଡ଼େ ଦାରୁଣ ।
ପୁତ୍ରକୁ ଧରିଣ ଶୈବ୍ୟା ଯେ ଏପରି କାନ୍ଦୁଥିଲେ ।
ପଳାଇଲୁ ବୋଲି ବିପ୍ର ଯେ ମନେ ବିଚାର କଲେ ।

ଶୈବ୍ୟା ରାଣୀ ପୁତ୍ର ଧରିଣ ବାହୁ ବାହାର ହେଲେ ।
ମୂର୍ଦ୍ଧାର କନ୍ଦରେ ପକାଇ ଅତି ରୋଦନ କଲେ ॥
ଆହା ମୁଁ କି ବୁଦ୍ଧି କରିବି ସତେ କେଣିକି ଯିବି ।
ଘୋର ଅନ୍ଧକାର ରାତ୍ରରେ କାହାକୁ ମୁଁ ଡାକିବି ॥
ବାରାଣସୀ ତୀରେ ଅଛଇ ଯେଉଁ ମଡ଼ା ଶ୍ମଶାନ
ଭାବିଲେ ଏଠାରେ ପୁତ୍ରକୁ କରିବି ମୁଁ ଦହନ ॥
ପୁତ୍ରକୁ ଦହନ କରିବା ପାଇଁ ଚିତା ରଚିଲେ ।
ସେ ସମୟେ ରାଜା ଚଣ୍ଡାଳ ବେଶେ ପ୍ରବେଶ ହେଲେ ॥
କଏ ତୁହି କାହା ଦୁହିତା କାହାର ମନୋବାଞ୍ଛା ।
ମାଗଣାରେ ମଡ଼ା ପୋଡ଼ିବା ପାଇଁ ଅଛୁ ବସ୍ତିରି ॥
ପଞ୍ଚାଶ କାହାଣ କଉଡ଼ି ଯେବେ ଦେଇ ପାରିବୁ ।
ତେବେ ଏ ସ୍ଥାନରେ ମୂର୍ଦ୍ଧାର ତୁ ଦହନ କରିବୁ ॥
ଶୈବ୍ୟାରାଣୀ ବୋଲେ କଉଡ଼ି କାହୁଁ ପାଇବି ମୁହିଁ ।
ଅନାଥିନୀ ହୋଇ ଏକାକୀ ଅଛି ସବୁ ହରାଇ ॥
ହରିଶ୍ଚନ୍ଦ୍ର ବୋଲେ ରାଣୀଙ୍କୁ ଶୁଣ ଶୁଣ ଲୋ ନାରୀ ।
ପଞ୍ଚାଶ କାହାଣୁ କଉଡ଼ାଏ ଊଣା ହେଲେ ଯା ଫେରି ॥
ଏମନ୍ତ ବଚନ ଶୁଣିଣ ଶୈବ୍ୟା ରୋଦନ କଲେ ।
ନାନା କଥା ସବୁ ଆଗରେ ସୁମରିଣ କାନ୍ଦିଲେ ॥
ହରିଶ୍ଚନ୍ଦ୍ର ନାମ ଧରିଣ କାନ୍ଦନ୍ତି ଶୈବ୍ୟାରାଣୀ ।
କେଉଁଠାରେ ଯାଇ ରହିଲ ମୋର ପରାଣ ମଣି ॥
ଆସି ଥରେ ଦେଖି ଯାଅନ୍ତୁ ତୁମ୍ଭ ପୁତ୍ର ମରଣ ।
ସନ୍ତକ କି ଦେଖିବ ନାଥ ହେ ତୁମ୍ଭ ଚନ୍ଦ୍ର ବଦନ ॥
ହାୟରେ ହାୟରେ ବେହିତ ମୋର ଜୀବ ଜୀବନ ।
ତୋତେ ଛାଡ଼ି କେଉଁ ପରିରେ ମୁହିଁ ବଞ୍ଚିବି ଧନ ॥

ଆରେ ସର୍ପ କହ କୁମର ମୋର କି ଦୋଷ କଲା ।
ବିନା ଦୋଷେ ପ୍ରାଣେ ଦଂଶିଲୁ ତୋର ମନରେ ଥିଲା ॥
ଏମନ୍ତ ରୋଦନ ଶୁଣିଣ ବସୁରିଲେ ସେ ରଜା ।
ମନେ ମନେ ସ୍ଥିର କରିଲେ ନଷ୍ଟେ ଏ ମୋ ଭାରିଯା ॥
ଏହିଟି ମୋହର କୁଳର ଚନ୍ଦ୍ରମା ରୋହିତାଶ୍ୱ ।
ଏତେ ବୋଲି ମୂର୍ଚ୍ଛା ଲଭିଲେ ଶୈବ୍ୟାରାଣୀଙ୍କ ଈଶ ॥
ହରିଶ୍ଚନ୍ଦ୍ର ନୃପତିଙ୍କି ସେ ଚହ୍ନି ଅଯୋଧ୍ୟା ରାଣୀ ।
ଦୁହେଁ ସେ ରୋଦନ କରିଲେ ଆକୁଳେ ବେନିପ୍ରାଣୀ ॥
କାହିଁ ଛାଡିଗଲୁ ବାପରେ ମୋ ରୋହିତ ନନ୍ଦନ ।
ଧର୍ମ କରିବାର ଫଳ କି ଦେଲ ହେ ଭଗବାନ ॥
ଜ୍ୱଳ ଏ ଅଗ୍ନିରେ ପଶିଣ ଝାସ ଦେବା ଏକ୍ଷଣି ।
ଆମ୍ଭ ଦୁଃଖ କଷ୍ଟ ସରିବ ମରିଲେ ତିନ ପ୍ରାଣୀ ॥
ଏମନ୍ତ ବିଚାର କରିଣ ଚିତା ଯୋଗାଡ଼ କଲେ ।
ଅଗ୍ନି ମଧ୍ୟେ ଝାସ ଦେବାକୁ ଦୁହେଁ ପ୍ରସ୍ତୁତ ହେଲେ ॥
ଏ ସମୟେ ବିଶ୍ୱାମିତ୍ର ସେ ପ୍ରବେଶି ମହାମୁନି ।
କ୍ଷାନ୍ତ ହୁଅ ବୋଲି ଦୂରରୁ କଲେ ସେ ମହାଧ୍ୱନି ॥
ତୁମ୍ଭର ସତ୍ୟକୁ ବଢ଼ିବା ପାଇଁ ଏସବୁ କଲି ।
ମରିନାହିଁ ତୁମ୍ଭ କୁମର ମୋହ ହୋଇଛି ଖାଲି ॥
ପାଣି ଛିଞ୍ଚି ମହାମୁନି ସେ ପୁଣି କଲେ ଚେତନ ।
ନିଦ୍ରାରୁ ଉଠିଲ ପରାଏ ଚେତା ହେଲେ ନନ୍ଦନ ॥
ତିନହେଁ ଉଠିଣ ପ୍ରଣାମ କଲେ ମୁନିପାଦେଣ ।
ବିଶ୍ୱାମିତ୍ର ଶୁଭ ପାଞ୍ଚିଲେ ସୁଖେ ହୁଅ ରାଜନ ॥
କି ଲେଖିବ ଲେଖି ନ ଜାଣେ କ୍ଷୁଦ୍ର ବୁଦ୍ଧି ମୋହର ।

ପୁରାଣ ଶାସ୍ତ୍ରରେ କାହିଁବା ଜ୍ଞାନ ଆସିବ ମୋର ।
ମୂରୁଖ ବୁଦ୍ଧିରେ ଯାହା ମୁଁ ଲେଖିଦେଲି ଶୁଣାଇ ।
ଦୋଷଥିଲେ କ୍ଷମା କରିବେ ହସ୍ତ ଯୋଡ଼ୁଛି ମୁହିଁ ।
ହରି ହରି ଶବ୍ଦ ଶୁଭନ୍ତେ ଆକାଶୁ ଶୂନ୍ୟବାଣୀ ।
ଧନ୍ୟ ତୁମ୍ଭେ ଦାମ ବୀର ହେ ଅଯୋଧ୍ୟା ନୃପମଣି ।
ଅଳ୍ପ ଦିନ ରାଜ୍ୟ ପାଳଣ ଅନ୍ତେ ସରଗ ବାସ ।
ମୀନକେତନ ଯେ କହଇ ମୋର ନଧେନ ଦୋଷ ।

## ପଦ୍ମାବତୀ ଶୋକ

ପଦ୍ମାବତୀ କହେ ବାପା ପାଖରେ ହେ ବାପା ମୋର
ମୋ ପ୍ରତି କର୍ମ୍ମ ଏତେ ନିଷ୍ଠୁର ହେ ବାପା ମୋର ।
ବାଳକାଳୁ ମୁହିଁ କ ଦୋଷକଲି ହେ ବାପାମୋର ।
ମହିଁ ଦରିଆରେ ନ ଦେଲ ପେଲି ହେ ବାପା ମୋର ।
ଅତ ସ୍ନେହେ ମୋତେ ବଢ଼ାଇ ଥିଲ ହେ ବାପା ମୋର ।
ଏତେ ବେଗେ କର୍ମ୍ମ ଅନ୍ତର କଲ ହେ ବାପା ମୋର ।
ଅନ ଜଳ ଛୋଡେ ମୁହିଁ ବିଶେଷ ହେ ବାପା ମୋର
ପଠାଇ ଦେଉଛ ଦୂର ବିଦେଶ ହେ ବାପା ମୋର ।
କୋଶ କୋଶ ହେବ ପଚାଶ କୋଶ ହେ ବାପା ମୋର ।
ମୋତେ ବିହାଦେଇ ହେବ ହରଷ ହେ ବାପା ମୋର ।
ତୁମ୍ଭେ ସିନା ଖୁସି ହୋଇ ରହିବ ହେ ବାପା ମୋର ।
ମୋ ନୟନୁ ସଦା ଲୁହ ବୋହିବ ହେ ବାପା ମୋର ।
ପଦ୍ମାବତୀ ନାମ ପାଶୋରି ଦେବ ହେ ବାପା ମୋର ।
ସାତସି ଦେଖା କ ଶୂନ୍ୟ ହୋଇବ ହେ ବାପା ମୋର ।
ବିହିର ବିଧାନ ଏହି ପ୍ରକାର ଲେ ପଦ୍ମାବତୀ ।
ଆଜ କରିଯିବୁ ମୋତେ ଅନ୍ତର ଲେ ପଦ୍ମାବତୀ ।

ଏହା ଶୁଣି ପିତାପାଶୁ ଚଳିଲା ସେ ପଦ୍ମାକ୍ଷି
ଦୁଃଖେ ବୋଲଇ ପାଶେ ଯାଇ ମିଳିଲା ,,
ଦଶମାସ ମୋତେ ଗର୍ଭରେ ଧରି ଲୋ ବୋଉମୋର
ଏତେ କଷ୍ଟ କ ଥିଲୁ ବର୍ତ୍ତି ,,
ପଠାଇ ଦେଉଛୁ ଯମର ପୁଷ୍ପି ,,
ଆଉକି ଅଛିବ ସେଠାରୁ ଫେରି ,,
ମାଛ ଖେଳୁଥାଏ ଜଳ ଭିତରେ ,,
ମୁହିଁ ଖେଳୁଥାଏ ତୋର କୋଳରେ ,,
ସେ ସ୍ନେହକ ଏବେ ଦେଲୁ ପାଶୋରି ,,
ପରଘରେ ଦେଲୁ କସ ବନ୍ଧୁରି ,,
ଅମ୍ବ ଗଛରେ କ ଯାମ ଫଳିବ ,,
ପର କ ମୋ ପେଟ କଥା ଜାଣିବ ଲୋ ବୋଉମୋର
ମନ ଜାଣି ମୋତେ ଭୁଞ୍ଜାଇ ଥାଉ ,,
ମୋ ମନ କଥା କେ ଜାଣିବ ଆଉ ,,
କ୍ଷଣେ ନ ଦେଖିଲେ ହେଉ ବିକଳ ,,
ଏ ଉପରେ ତୁମେ କଲ ସକଳ ,,
ଜାଣିଲି ତୁମ୍ଭର ମନ ଭାବନା ,,
ଏହାକି ମନରେ ଥିଲା ଭାବନା ,,
ଉଇଞ୍ଚ ଭିତରେ କାକର ପାଣି ,,
ଛଡ଼ାଇ ଦେବକି ସାଙ୍ଗ ଭଉଣୀ ମୋ ନୁଆ ବୋଉ
ତୁମ୍ଭ ସଙ୍ଗେ କିଏ ଗାଧୋଇ ଯିବ ,,
ରଙ୍ଗ ହଳଦୀ କେ ଲଗାଇ ଦେବ ,,
ଏକଠାଇଁ ବସି କିଏ ଖାଇବ ,,
ତୁମ୍ଭ ସଙ୍ଗେ କିଏ ଖେଳିବ ହେବ
ପୂର୍ଣ୍ଣିମୀ ରାତ୍ରରେ ଚନ୍ଦ୍ର ଯେସନ

ତୋ ମୁଖଟି ମୋତେ ଦିଶେ ତେସନ ନୂଆ ବୋଉ
ଗୁମାନେ ଯଦି ମୁଁ ପଡ଼ିବ ଶୋଇ ,,
କଥାଗୁଣ୍ଠ୍ କହି ଦେବୁ ହସାଇ ,,
ସତେକି ତୁମ୍ଭଙ୍କୁ ମୁଁ ଗୁଣ୍ଡିପିବ ମୋ ନୂଆ ବୋହୂ
ଘରଘରେ ରହି କାଳ କାଟିବ ,,
କଦଳୀ ଗଛରେ କଦଳୀ ପାଚେ ମୋ ନୂଆ ବୋଉ
ଝିଲତଳେ ଗଲା ବେଶର ପାଣି ,,
ସବୁ ସ୍ନେହ ମୋର କାଟି ଦେଲଣି ,,
ମୁଁ ଖେଳୁଥିଲି ତୁମ୍ଭ ସଙ୍ଗରେ ,,
କପଟ ରହିବ ଘର କୋଣରେ ,,
ଟୋକ ନଣନ୍ଦ ମୋ ଟକଟେକ ଥିବେ ,,
ହସି ହସି ଯେଉଁ କଥା କହିବେ ,,
ଶୁଣି ମୋ ହୃଦୟ କରତ୍ତ ହେବ ,,
ଏ ଦାରୁଣ ଜ୍ୱାଳା କିଏ ସହିବ ,,
ହାଣ୍ଡିଦେହୁଁ କାଉ ଖୁଣ୍ଟିଲା ପରି ,,
ଖୁଣ୍ଟିବେ ଆଜ ନଣନ୍ଦ ମୋହର ଟିହ ନୂଆ ବୋଉ
ଭୁଲାଶେଯେ ମୁଣ୍ଡ ବାଡ଼େଇ ଦେବ ,,
ଶୁଖିଲା କୁଅକୁ ଡେଇଁ ପଡ଼ିବ ,,
ଦୁବ ଗଛରେ ମୁଁ ଦଉଡ଼ି ଦେବ ,,
ପାହୁଡ଼େ ପାଣିରେ ବୁଡି ମରିବ ,,
ବିଦାୟୁ କାନ୍ଦଣା ଦାଣ୍ଡେ ଶୁଭିଲା ,,
ଆଜ୍ ଅନ୍ନମୋର ଶେଷ ହୋଇଲା ,,
ସେହି ପାଖେ ଥାଇ କହେ ଉଜ୍ଜ୍ୱଳ ହେ ସାଧୁଜନେ
ଝିଅ ଶିଖି ସିନା ଶ୍ୱଶୁର ଘରେ ,,

ଶାନ୍ତ ପ୍ରେସ୍, ବ୍ରହ୍ମପୁର-୬ ରେ ମୁଦ୍ରିତ